ସାରା ବ୍ରହ୍ମାଣ୍ଡରେ ବିଭିନ୍ନ ସଂଖ୍ୟକ ଅକ୍ଷରକୁ ନେଇ ବାର୍ଣ୍ଣିକ ଛନ୍ଦ ସଂଖ୍ୟା ନିମ୍ନ ମତେ ।

| ଅକ୍ଷର ସଂଖ୍ୟା | ଛନ୍ଦ ସଂଖ୍ୟା | ନିର୍ଣ୍ଣୟ ସୂତ୍ର |
|---|---|---|
| 1 | 2 | (2 the power 1) |
| 2 | 4 | (2 the power 2) |
| 3 | 8 | 2^3 |
| 4 | 16 | 2^4 |
| 5 | 32 | 2^5 |
| 6 | 64 | 2^6 |
| 7 | 128 | 2^7 |
| 8 | 256 | 2^8 |

**ଅର୍ଥାତ୍ ଉକ୍ତା ଶ୍ରେଣୀୟ ବା 1 ଅକ୍ଷରର ଛନ୍ଦ 2ଟି, ଅତ୍ୟୁକ୍ତା ଶ୍ରେଣୀୟ ବା 2 ଅକ୍ଷରର 4ଟି, ମଧ୍ୟା ବା 3 ଅକ୍ଷରର ଛନ୍ଦ 8ଟି, ପ୍ରତିଷ୍ଠା ଶ୍ରେଣୀୟ ବା 4 ଅକ୍ଷରର ଛନ୍ଦ 16ଟି, ସୁପ୍ରତିଷ୍ଠା ଶ୍ରେଣୀୟ ବା 5 ଅକ୍ଷରର ଛନ୍ଦ 32ଟି, ଗାୟତ୍ରୀ ଶ୍ରେଣୀୟ ବା 6 ଅକ୍ଷରର ଛନ୍ଦ 64ଟି, ଉଷ୍ଣିକ୍ ଶ୍ରେଣୀୟ ବା 7 ଅକ୍ଷରର ଛନ୍ଦ 128ଟି, ଅନୁଷ୍ଟୁପ୍ ଶ୍ରେଣୀୟ ବା 8 ଅକ୍ଷରର ଛନ୍ଦ 256ଟି,  ଅତିକୃତି ଶ୍ରେଣୀୟ ବା *26 ଅକ୍ଷରର ଛନ୍ଦ 2^26 ବା 6,71,08,864ଟି* ଅଛି । ଏହି ପରି ଏ ସଂଖ୍ୟା ବଢି ଚାଲିବ । ସେଥିରୁ ପ୍ରତିଷ୍ଠା ଶ୍ରେଣୀୟ 16ଟି ଯାକ ଛନ୍ଦର ଉଦାହରଣ ଏଠାରେ କବିତା ଆକାରରେ ଦିଆ ଇଲା । ଏ କବିତାର ମୋଟ 32 ପଦରୁ ପ୍ରତ୍ୟେକ ଦୁଇ ପଦ ଗୋଟିଏ ଲେଖା ପ୍ରତିଷ୍ଠା ଛନ୍ଦର ଉଦାହରଣ ନିମିତ୍ତ ସମର୍ପିତ ।**

# କବିତା:   ଉପଦେଶ ମାଳିକା

111-1 ଛନ୍ଦ: ହରି

ନ କର ତୁ ଅହରହ
ମିଛ ଗପ ଶହ ଶହ । 1
ମୁଖ ଧୁଅ ବହି ଧର
ଉଠୁଅଛି ଦିନକର । 2

111-2 ଛନ୍ଦ: ସତୀ

ସରୁ ଥରେ ବହି ପଢ଼ା
ଜଳଖିଆ ହବ ବଢ଼ା ।3
ସରି ଗଲେ ସବୁ ଖିଆ
ଶଗଡଟା ହବ ଠିଆ ।4

112-1 ଛନ୍ଦ: ପୁଞ୍ଜି

ନ କଲେ ତୁ ବହି ପାଠ
ଦିଦି ଦେବ କଷି ଛାଟ । 05
ମନ ଦେଇ ପଢି ଚାଲ
ପିଠିରେ ନ ପଡୁ ତାଳ । 6

| | |
|---|---|
| 112-2 | ଛନ୍ଦ: ଦେବୀ |
| ଛୁଟି ହେଲେ | କର ଖେଳା |
| ରବିବାରେ | ଦୁଇବେଳା । 07 |
| ପଢିବାରେ | କିଛି ହେଳା |
| ଯଦି ହେଲା | ଯିବ ଭେଳା।08 |

| | |
|---|---|
| 121-1 | ଛନ୍ଦ: ଧର |
| | (ନାମାନ୍ତର: ହରା) |
| କଥା ଯଦି | ନ ମାନିବ |
| ମିଠା ଫଳ | କି ଆସିବ । 09 |
| ଦିନେ ବଡ | ତୁମେ ହବ |
| ପଢା ଫଳ | ନିଜେ ନବ । 10 |

| | |
|---|---|
| 121-2 | ଛନ୍ଦ: ସୁଧୀ |
| ସୁନା ପିଲା | ହୁଏ ଯିଏ |
| ପଢା ସଦା | କରେ ଯିଏ ।11 |
| ନ ଆସିଲେ | ପଚାରିକା |
| ବୁଝେ କରେ | ମନେରଖା ।12 |

| | |
|---|---|
| 122-1 | ଛନ୍ଦ: ଉଷା |
| ଛୁଆବେଳୁ | ଜଣେ କେହି |
| ପଢା ଛାଡି | ଭଲେ ନାହିଁ ।13 |
| ସଦା ତେଣୁ | ମନେ ଥାଉ |
| ବିନା ପାଠ | ସୁନା ନୋହୁ ।14 |

| | |
|---|---|
| 122-2 | ଛନ୍ଦ: କ୍ରୀଡା |
| ପଢା ମଧ୍ୟେ | କ୍ଷଣେ ହେଲେ |
| ନ ଧାଏଁ ସେ | ଜମା ଖେଳେ ।15 |
| ସିଏ ନିଶ୍ଚେ | ଧରା ଧାମେ |
| ଗଣା ଯାଏ | ସସମ୍ମାନେ ।16 |

| | |
|---|---|
| 211-1 | ଛନ୍ଦ: ନିଶି |
| ଯେଉଁ ଦିନ | ହେବୁ ବଡ |
| ଦେଖିବୁ ତୁ | ଘୂର୍ଣ୍ଣି ଝଡ । 17 |
| ଜୀବନର | ଯେ କଷଣ |
| ପାଠ ଥିବ | ସାଥିଜନ । 18 |

211-2 ଛନ୍ଦ: କଳା

ଗାଳି କରେ ତୋ ହିତରେ
ଯା ମୁ କହେ ତୋ ହିତରେ ।19
ତୋ ସୁଖରେ ଭାରି ସୁଖେ
ନେବି ସତେ ଜାକି ବୁକେ ।20

212-1 ଛନ୍ଦ: ଧାରୀ

ଏହି ବିଶ୍ୱ କର୍ମ ଭୂଇଁ
କର୍ମଠାରୁ ଧର୍ମ ନାହିଁ । 21
କର୍ମ ଲାଗି ପାଠ ମାତ୍ର,
ତେଣୁ ହେବୁ ଯୋଗ୍ୟଛାତ୍ର ।22

212-2 ଛନ୍ଦ: ରଙ୍ଗୀ

ପୁତ୍ର କେବେ ସାଙ୍ଗ ମେଳେ
ଖେଳ ନା ରେ ପାଠବେଳେ ।23
ଖେଳ ଯେତେ ପାଠ ଶେଷେ
ଖ୍ୟାତନାମା ହେବ ଦେଶେ ।24

221-1 ଛନ୍ଦ: କୃଷ୍ଣା

ଯେବେ ଯିବ ବିଦ୍ୟାଳୟ
ପାଠେ ରଖ ବାପା ଲୟ ।25
ଖାତା ଧରି ଲେଖା କର
ବାଗେଇକି ହସ୍ତାକ୍ଷର । 26

221-2 ଛନ୍ଦ: ଧୂର

କେବେ ବି ତୋ ବିଦ୍ୟାଳୟେ
ଯା ନା ତୁହି କାହା ଭୟେ ।27
ଶ୍ରଦ୍ଧା ବଶେ ପାଠେ ଥିଲେ
ବିଦ୍ୟା ହୁଏ ନିଶ୍ଚେ ଭଲେ ।28

222-1 ଛନ୍ଦ: ଧାର

ଭୁଗୋଳେ ବି ସାହିତ୍ୟେ ବି
ଐତିହ୍ୟେ ବି ସଦ୍ଗ୍ରନ୍ଥେ ବି ।29
ହୀନା ନାହିଁ ବିଦ୍ୟା କେହି
ବିଦ୍ୟା ଘେନ ନିଷ୍ଠା ଦେଇ ।30

222-2 ଛନ୍ଦ: କନ୍ୟା

ଯାଏ ନା ଯେ କେବେ ଚୌର୍ଯ୍ୟେ
ଭାଜେନା ତା ନାନା କାର୍ଯ୍ୟେ ।31
ସେହି ଶ୍ରେଷ୍ଠା ସେ ଶ୍ରୀ ବିଦ୍ୟା
କାଳେକାଳେ ଯାହା ବନ୍ଦ୍ୟା ।32

ଇତି ଶ୍ରୀ ଶ୍ରୀ ବାଣୀପୁତ୍ରେନ ଉଦାହୃତଂ ଦିବ୍ୟପ୍ରତିଷ୍ଠା ଶ୍ରେଣୀଭୁକ୍ତଂ ଛନ୍ଦଷୋଡଶକଂ ସମାପ୍ତମ୍

ଲ. କବି 202302131313